# ବାଉ ଦାସଙ୍କ ଭଜନ।



ଗୋପାଳଚନ୍ଦ୍ର ପ୍ରହରାଜ

ଓ

ଶ୍ରୀମତୀ ପୀତାମ୍ବରୀ ଦେବୀ।

# ବାଉଦାସଙ୍କ ଭଜନ

ଓ

# ଶିଶୁଗୀତ ।



ଗୋପାଳଚନ୍ଦ୍ର ପ୍ରହରାଜ

ଓ

ଶ୍ରୀମତୀ ପୀତାମ୍ବରୀ ଦେବୀ

ପ୍ରକାଶକ :—

ପଣ୍ଡିତ ଶ୍ରୀ ଆକୁଳ ମିଶ୍ର କାବ୍ୟତୀର୍ଥ

ମେନେଜର କଟକ ଟ୍ରେଡିଂ କୋମ୍ପାନୀ

ବାଲୁବଜାର

ପୋ: ଅ: ଚାନ୍ଦନୀଚୌକ,

କଟକ ।

୧୯୨୭

Rs 1 - 2 0

# ନିବେଦନ ।

---

ଆଜକୁ ୧୫ । ୨୦ ବର୍ଷ ପୂର୍ବେ କେତେ ଗୁଡ଼ିଏ 'ବାଇଦାସଙ୍କ ଭଜନ' 'ଉତ୍କଳସାହିତ୍ୟ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଇତିମଧ୍ୟରେ ଆଉ କେତେ ଗୋଟି ଭଜନ ମୁଁ ରଚନା କରିଥିଲି । ଏ ଗୁଡ଼ିକ କେବଳ ବୃଦ୍ଧ ବୟସରେ ବୋଲି ମନବୋଧ କରିବା ଉଦ୍ଦେଶ୍ୟରେ ରଚିତ । ମୁଁ ପ୍ରତିଦିନ ଏ ଭଜନମାନ ବୋଲିବା ସମୟରେ ମୋର ଭଗିନୀପ୍ରତିମା ଶ୍ରୀମତୀ ପୀତାମ୍ବରୀଦେବୀ ଏଥିପ୍ରତି ଆକୃଷ୍ଟା ହୋଇଥିଲେ ଓ ସେ ତାଙ୍କର ପ୍ରଥମଚେଷ୍ଟା ଦ୍ୱାରା ଯେଉଁ କେତୋଟି ଭଜନ ଓ ଶିଶୁଗୀତ ରଚନା କରିଥିଲେ ସେଗୁଡ଼ିକ ମୁଁ ସ୍ଥାନେ ସ୍ଥାନେ ପରିବର୍ତ୍ତନ ଓ ସଂଶୋଧନ କରିଅଛି । ସେ ଗୁଡ଼ିକ ଶୁଣି କେତେକ ବନ୍ଧୁ ମୋପରି ଆନନ୍ଦିତ ହେବାର ଦେଖି 'ବାଇ-ଦାସଙ୍କ ଭଜନ' ସଙ୍ଗେ ପୀତାମ୍ବରୀଙ୍କ ଭଜନ ଓ ଶିଶୁଗୀତ ଗୁଡ଼ିକ ଯୋଗକରି ଏ କ୍ଷୁଦ୍ର ପୁସ୍ତିକା ଖଣ୍ଡି ପ୍ରକାଶକଲି—ଏ ଗୁଡ଼ିକ ମୋପରି ଶାନ୍ତି-ହୀନ ଜଣେ ସୁଦ୍ଧା ଦୁଃଖୀର ମନରେ ଆନନ୍ଦ ଜାତ କରାଇଲେ ମୋର ବାଞ୍ଛା ପୂର୍ଣ୍ଣହେବ । ସାହିତ୍ୟକ୍ଷେତ୍ରରେ ଏମାନଙ୍କ ପାଇଁ ଆସନ ମୁଁ କିମ୍ବା ପୀତାମ୍ବରୀ ଆଶା କରି ନାହୁଁ—ଏହା ଭୁକ୍ତଭୋଗୀଙ୍କ ପାଇଁ ଅଭିପ୍ରେତ ଓ ସେମାନେ ଏହା ଆସ୍ୱାଦନ କଲେ ଯଥେଷ୍ଟ । ଇତି

କଟକ
୧୯୨୭

ଗୋପାଳ ଚନ୍ଦ୍ର ପ୍ରହରାଜ ।

# ବାଉଦାସଙ୍କ ଭଜନ ।



( ଉତ୍କଳ ସାହିତ୍ୟରେ ପ୍ରକାଶିତ )

ରାଗ ପ୍ରଭାତୀ—ତାଳ କାବାଲି ।

ଜୟ ପରମେଶ୍ୱର ପ୍ରଭୋ ପରାତ୍ପର
ସଜ୍ଜନ ମଙ୍ଗଳକାରୀ ।
ଶରଣାଗତଙ୍କୁ ଉଦ୍ଧାରଣ କର
ଆରତ ଦୁର୍ଗତିହାରୀ । ଘୋଷା ।
ଜଗତର କାରଣ ଜଗତର ପାଳନ
ଜଗତଉଦ୍ଧାରଣକାରୀ ।
କରୁଣାକର ପ୍ରଭୋ ଦିଅ ଏହି ବର ବିଭୋ
ଯାଉ ଦିନ ନାମ ଉଚ୍ଚାରି । ୧ ।
ଘୋର ବିପଦ ନାଶି କରୁଣା କର ଅୟି
ଭକତହୃଦବିହାରୀ ।
ଭ୍ରାନ୍ତ ବିପଦେ ମନ ନ ଭୁଲୁ କଦାଚନ
ପିଉ ତବ କରୁଣାବାରି । ୨ ।
ଖଣ୍ଡି ବିପଦଚୟ ଛୁଟାଅ ଏ ଭବଭୟ
ପାପ କଳୁଷ ନିବାରି ।
ଦିଅ ମନେ ଶାନ୍ତି ଦିଅ ପଦେ ଭକ୍ତି
ଭବଭୟମୋଚନକାରୀ । ୩ ।
ଯାଉ ଛାଡ଼ିଯାଉ ପାପ ଦୂରୁ ଏ ବିଷମତାପ
କରୁଛି ମୁଁ ପାଦେ ଗୁହାରି ।

ବାଲୁଦାସଙ୍କ ଭଜନ ।

ଦୃଷ୍ଟିଅ ସଦା ସୁଖ    ଛଡ଼ାଅ ସକଳ ଦୁଃଖ
କର କର ଭବନଦୀ ପାର ।

( ଗୋପାଳ ଚନ୍ଦ୍ର ପ୍ରହରାଜ )

---

( ଉତ୍କଳ ସାହିତ୍ୟରେ ପ୍ରକାଶିତ )

ରାଗ ଲୁମ୍ ଖମ୍ବାଜ—ତାଲ ଝୁମ୍ପା ।

ସତ୍ୟ ଶିବ ସୁନ୍ଦର ପ୍ରଭୁ, ହେ ନିରଞ୍ଜନ ।
ପାପ ତାପ ଦୁଃଖ ଦୂର କର ସନାତନ । ଘୋଷା ।
ଅଧମ ତାପ ନାଶନ    ଦୀନ ଦୁଃଖମୋଚନ
ମଙ୍ଗଳ କର ମଙ୍ଗଳମୟ ଜଗତକାରଣ । ୧ ।
ସକଳ ବିଶ୍ୱବନ୍ଦନ    ଭକତ ହୃଦଚନ୍ଦନ
ଦିଅ ଶାନ୍ତି ଦିଅ ମୁକ୍ତି ଦିଅ ହେ ସୁଜ୍ଞାନ । ୨ ।
ଜଗତ ହିତସାଧନ—    ବରଷେ ଦିନ ଯାପନ
କୀର୍ତ୍ତନ ନାମ ମର୍ତ୍ତ୍ୟରେ ତବ କରୁ ଏ ଜୀବନ । ୩ ।

( ଗୋପାଳ ଚନ୍ଦ୍ର ପ୍ରହରାଜ )



( ଉତ୍କଳ ସାହିତ୍ୟରେ ପ୍ରକାଶିତ )

ରାଗ—ଖମ୍ବାଜ । ତାଲ ଯତି ।

ଅରେ ଜୀବଧନ    ଭଜ ହରି ନାମ ।
ଯାଉ ଶୋକ ଦୁଃଖ    ମିଳୁ ସୁଖଧାମ । ଘୋଷା ।
ଏ ସଂସାର ସୁଖ    ଦିଏ କେତେ ଦୁଃଖ,
କେବଳ ଥାଉ ଥାଉ    ଭଜ ପ୍ରାଣାରାମ । ୧ ।
ଘୋର ଅନ୍ଧକାରେ    ପାପପାରାବାରେ
ପଥର ସଖାଳ    ଏକା ବନ୍ଧୁ ନାମ । ୨ ।

ସମ୍ପଦେ ବିପଦେ    ସୁଖେ ପରମାଦେ
ନ ଟଳୁ ଏ ମନ    ରହୁ ସେହି ନାମ । ୩ ।
ପ୍ରଭୁଙ୍କ କରୁଣା    ନ ହୁଏଟି ଊଣା
ଦୁଃଖ ଶୋକ ଜଣା    ଏକା ସେହି ନାମ । ୪ ।
ସଂସାରଜଞ୍ଜାଳେ    ଘୋର କୋଳାହଳେ
ବିଷୟଗରଳେ    ଔଷଧ ସେ ନାମ । ୫ ।

( ଗୋପାଳଚନ୍ଦ୍ର ପ୍ରହରାଜ )

---

( ଉତ୍କଳ ସାହିତ୍ୟରେ ପ୍ରକାଶିତ )

ରାଗ—ଅଲେୟା । ତାଳ ଝୁଲା ।

କି ସୁଖରେ ଜୀବଧନ !    ବିଭୁ ନାମ ଉଚ୍ଚାରଣେ ।
ଦୁଃଖ ଶୋକ ଯାଏ ଲୁଚି ପାପ ତାପ ଯାଏ କେଣେ । ଘୋଷା ।
ଚରାଚର ଏ ସଂସାର    ସୃଷ୍ଟିର ଯେ ଆଦିମୂଳ
ଚାଲ ସେହି ପ୍ରଭୁ ନାମ ଗାଇବା ଆନନ୍ଦମନେ । ୧ ।
ପ୍ରଭୁ-ଆଦେଶ ପାଳନ    କରୁଥିବା ଅନୁକ୍ଷଣ
ବିବେକ ପଥରେ ଚାଲି ହୋଇବା ଧନ୍ୟ ଜୀବନେ ॥
ପର ପାଇଁ ପରିଶ୍ରମ    କରୁ କରୁ ଯାଉ ଦିନ
ଦିଅ ଏହି ବର ଦାନ ପାଇବା ଆଶ୍ରା ଚରଣେ । ୩ ।
ଦୀନଦୁଃଖିଙ୍କ ସେବାରେ    ଲାଗୁ ମନ ନିରନ୍ତରେ
ଶେଷେ ଏ ସଂସାର ଛାଡ଼ି ପଶିବା ଅମରଧାମେ । ୪ ।

( ଗୋପାଳ ଚନ୍ଦ୍ର ପ୍ରହରାଜ )

---

( ଉତ୍କଳ ସାହିତ୍ୟରେ ପ୍ରକାଶିତ )

ଭଜନ ।

ବାଇ ଧନରେ    ସଞ୍ଜ ଗଳୁଛି ପାନ୍ଥ—
ଉଠ ବେଗେ ଲାଗ କାମରେ ଯାଇ । ଘୋଷା ।

## ବାଞ୍ଛୁଦାସଙ୍କ ଭଜନ ।

ଯୋବଁଯାଭୃଲଅ    ଲଗିଟଲେଣି ରେ
ପଢ଼ୁଆ ବଳକୁ ଚଷିବାପାଇଁ ।
ମୂଲିଆ ବାପଡ଼ା    ଚେଇଁ ଶୋଇଅଛି
ଖଜଣା ଗଣ୍ଡାକ ମିଳବ ନାହିଁ । ୧ ।
ଦିହ ଲାଗି କନା    ପେଟ ପାଇଁ ଦାନା
ତେଂହେ କପାଳକୁ ମିଳନ୍ତି ନାହିଁ ।
ନବକୁଆ ହୋଇ    ଘରେ ଅଛୁ ଶୋଇ
ଧନ ଦଉଲତ ଖଣ୍ଡକୁ ଦେଇ । ୨ ।
ଦୀପ ଲିଭିଗଲେ    ଚୋର ପଳାଇଲେ
ଯାଇଁଥିବୁ ଚୋର ଜଗିବାପାଇଁ ।
ଏହି ବେଭାରନ୍ତି    କୋଦଣ୍ଡା ନିଷାପ
ଭଲ ଭଲ ଲୋକେ ହସିବେ ଚାହିଁ । ୩ ।
ଡଢେ ଲାଜ ମାଡ଼େ    କରିବାକୁ ଘର
ଦାଣ୍ଡକୁ ରେ ଦିନେ ବାହାରୁ ନାହିଁ ।
ପର ପୁଅ ଆସି    ତୋ ପିଣ୍ଡାରେ ବସି
ଧିକାରନ୍ତି ତେବେ ଚେତିଲୁ ନାହିଁ । ୪ ।
ଜାତି ଜାତି ବୋଲି    ଉଚ୍ଛନ୍ନ ହେଲୁଣି
ତେବେ ତୋର ଖୋଇ ଛାଡ଼ିଲୁ ନାହିଁ ।
କର୍ପୂର ଗଲାଣି    କନାଖଣ୍ଡ ଘେନି
ଆଉ କେତେ ଦିନ ଶୁଙ୍ଘିବୁ ଭାଇ । ୫ ।

( ଗୋପାଳ ଚନ୍ଦ୍ର ପ୍ରହରାଜ )

---

## ଭଜନ ।

( ଶ୍ରୀ ଚୈତନ୍ୟଦେବଙ୍କ ଭଜନ ଅନୁସରଣରେ ରଚିତ )

କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ହେ
କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ହେ ।

କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ପାହିମାଂ
କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ରକ୍ଷମାଂ ।
କୃଷ୍ଣ କୃଷ୍ଣ ହେ ମହେଶ ପାପ ତାପ ନାଶ ହେ
ଦୁଃଖ ଶୋକ କାମ କ୍ରୋଧ ଲୋଭ ମୋହ ଗ୍ରାଶ ହେ । ୧ ।
ଭକ୍ତି ମୁକ୍ତି ବାରିସିନ୍ଧୁ ବକ୍ଷରେ ବିକାଶ ହେ
ବିଶ୍ୱପ୍ରେମ ଭ୍ରାତୃଭାବ ଅନ୍ତରେ ପ୍ରକାଶ ହେ । ୨ ।
ଯାଉ ଦୁଃଖ ଆସୁ ସୌଖ୍ୟ ଆସୁ ପ୍ରେମହାସ ହେ
ଲାଗୁ ପ୍ରେମ ଭକ୍ତିଭାବ ଯାଉ ଦୁଃଖ ହ୍ରାସ ହେ । ୩ ।
ଉଇଁ ଆସୁ ପୁଣ୍ୟରାଶି ପାପ ହୋଉ ନାଶ ହେ
ଭକ୍ତ ହୃଦ କନ୍ଦରେଣ ରାଜ ତୁ ଅନାଶ ହେ । ୪ ।
ଛେଦ ଭେଦ ଭ୍ରାନ୍ତ ମୋହ ଛିଣ୍ଡୁ କାଳପାଶ ହେ
ରକ୍ଷ ରକ୍ଷ ଏ ଅରକ୍ଷ ଯାଉ ହୃଦ ପ୍ରାଣ ହେ । ୫ ।
ଗର୍ବ ଖର୍ବ ହେଉ ସର୍ବ ଅହଙ୍କାର ନାଶ ହେ
ଦିଅ ଶାନ୍ତି ଦିଅ ମୁକ୍ତି ଦିଅ ପାଦେ ବାସ ହେ । ୬ ।
ପାପ ଦ୍ୱନ୍ଦ ମୋହବନ୍ଧ ନ କରନ୍ତୁ ଗ୍ରାସ ହେ
ଦିଅ ପାଦପଦ୍ମେ ବାସ ନୁହେଁ ମୁଁ ନିରାଶ ହେ । ୭ ।
ଆସ ହିନଦୁଃଖୀ ଚିତ୍ତୁଁ ଦୁଃଖଯାଉ ହ୍ରାସ ହେ
ତୁମ୍ଭ ନାମ ଗାଉ ଗାଉ ପ୍ରାଣ ଯାଉ ନାଶ ହେ । ୮ ।

( ଗୋପାଳ ଚନ୍ଦ୍ର ପ୍ରହରାଜ )

---

## ଶରୀରଭେଦ ଭଜନ ।

ଅରେ ବାଇମନ ଗଲ୍ପ ଅଛି ହିନ
ନ ଚିହ୍ନିଲୁ ଆପଣାକୁ ।
ହିନା କେତେପାଇଁ ଭୁଲିଛୁ ଏଠାଇଁ
ହିନେ ହେବ ଛାଡ଼ିବାକୁ ॥

ଆସି ଥିଲୁ ଏକା ଗଲାବେଳେ ଏକ୍ଲା
କେହି ସଙ୍ଗେ ଯିବେ ନାହିଁ ।
କେତେ କେତେ ବୀର ଛାଡ଼ିଲେ ଏ ପୁର
ନ ଗଲେ କେହି ଗୋଡ଼ାଇ ॥
ଯେଉଁ ଠାବକୁ ତ ନେବେ ଯମଦୂତ
ତହିଁ ନ ଥିବେ ତୋ ଜନ ।
ନ ଥିବ ଶକତ ନ ଥିବ ରାଜୁତ
ନ ଥିବ ତୋ ବଡ଼ପଣ ॥
ସଞ୍ଚିଅଛୁ ଯାହା ଖଣ୍ଡେ ନେବେ ତାହା
ଯାହା ଦେବୁ ହାତ ଟେକ,
ସେତିକ ମାତର ସଙ୍ଖାଳ ପଥର
ତାକୁ ସିନା ଧନ ଲେଖି ॥
ହନ ଅଡ଼େଇକୁ ଏହି ବଡ଼େଇକୁ
କପାଁ ହେଉଅଛୁ ଟେକ ।
ନ ଚେତିଲୁ ମନ ନ ଭାଙ୍ଗେ ସପନ
ଏତେ କଥା ଦେଖି ଦେଖି ॥
ପର ଦୁଃଖ ଦେଖି ନ ହେଉ ତୁ ଦୁଃଖୀ
ଲୋଡ଼ୁଥାଉ ନିଜ ସୁଖ ।
ନିଜ ପେଟ ଏକା କରୁଛୁ ଜୀବକା
ନ ଦେଉ ମୁଠିଏ ଭିକ ॥
ବଞ୍ଚିରଛୁ ଅଟେରେ ତୋହର ଟିଙ୍ଗରେ
ତାଡ଼ିଦେବୁ ଏ ଜଗତ ।
ଘଡ଼ିକ ଅନ୍ତରେ ଠେଲ ପଡ଼ିବୁ ରେ
ହେବୁ ତୁ ଖଣ୍ଡିଏ ଭୂତ ।

( ଶ୍ରୀମତୀ ପୀତାମ୍ବର ଦେବୀ )

## ଭଜନ ।

( ବଙ୍ଗଳା ଭଜନକୁ ଅନୁସ୍ୟୁ କରି ରଚିତ )

ଅନାଥର ନାଥ<br>ଅହେ ଦୀନନାଥ
କି ଦେଇ ପୂଜିବି ମୁହିଁ ହେ ।
ଯେ ଧନ ତୁମ୍ଭଙ୍କୁ<br>ଇଚ୍ଛଇଁ ଦେବାକୁ
ମୋର ଅଧିକାର ନାହିଁ ହେ । ୧ ।

ଏହି ଚରାଚର<br>ଅଟଇ ତୁମ୍ଭର
ସ୍ଥାବର ଜଙ୍ଗମ ସବୁ ହେ ।
ତୁମ୍ଭର ସୃଜନ<br>ତୁମ୍ଭର ରଚନ
ଜାତ ସବୁ ତୁମ୍ଭ ଗର୍ଭୁଁ ହେ । ୨ ।

ସବୁ ଜଗତର<br>ଅଟଇ ତୁମ୍ଭର
କିଛି ନାହିଁ ମୋର ପର ହେ ।
ତୁମ୍ଭେ ଅଟ ମୋର<br>ଧନ ହୃଦୟର
ତୁମ୍ଭେ ମୋ ରକ୍ଷପସର ହେ । ୩ ।

ଯାହା ତୁମ୍ଭ ମନ<br>ହେଉଛି ହେ ବନ୍ଧୁ
ନାଥ ନକେ ବାଞ୍ଛକର ହେ ।
ତାହା ମୁଁ ଛୁଇଁଲେ<br>ଏ ହାତ ଲାଗିଲେ
ପାପେ ହୋଇଯିବ ଭାର ହେ । ୪ ।

ଏ ବିଶ୍ୱ ଜଗତେ<br>ଧନ ଅଛୁ ଯେତେ
ସବୁ ତ ଅଟେ ତୁମ୍ଭର ହେ ।
ମୋର ନାହିଁ କିଛି<br>ଏକ ଧନ ଅଛି
ତୁମ୍ଭେତ ଧନ ମୋହର ହେ । ୫ ।

( ଶ୍ରୀମତୀ ପାଂଚାମୁଖୀ ଦେବୀ )

## ଭଜନ ।

( ହିନ୍ଦୀ ଭଜନ ଅନୁକରଣରେ ରଚିତ )

ଜେ ଜେ ନାରାୟଣ ବ୍ରହ୍ମପରାୟଣ
ଶ୍ରୀପତି କମଳାକାନ୍ତ ( ବଭୋ )
ହର ଅଧମ ଜନ କରେ ପଦେ ବନ୍ଦନ
କର କର ଦୁର୍ଗତି ଶାନ୍ତ ( ବଭୋ ) । ୧ ।
ପାପ କଳୁଷ ଘନ କର କର ଖଣ୍ଡନ
କର ମୋହ ବନ୍ଧନ ଅନ୍ତ ( ବଭୋ )
ଶଙ୍କର ଭାସ୍କର ଦେବ ପୁରନ୍ଦର
କଳି ନ ପାରଲେ ତବ ଅନ୍ତ ( ବଭୋ ) । ୨ ।
ଏ ଭବସାଗର ଘୋର ଭୟଙ୍କର
ଲଙ୍ଘବା ନ ହୁଏ ଶାନ୍ତ ( ବଭୋ ) ।
ଦଅ ଦେ ଅଭୟ ବର ଉଦ୍ଧର ଧର ଧର
ଆସ ଆସ ଏ ଜୀବର କାନ୍ତ ( ବଭୋ ) । ୩ ।

( ଗୋପାଳ ଚନ୍ଦ୍ର ପ୍ରହରାଜ )

— — — —

## ଶିଶୁ ଗୀତ ।

( ଉତ୍କଳର ସ୍ୱ ୨୧୦ ମ ସଂଖ୍ୟା ମାଘ ୧୩୩୦ ରେ ପ୍ରକାଶିତ । )

### କୁଆଁ ।

ଅରେ ଅରେ କାଉ ଦୋଇ ରାଉ ରାଉ
ଅଗଣାରେ ଗଲୁ ବସି ।
କଏ ବନ୍ଧୁ ମୋର ଆସିବେ ମୋ ଘର
ବାପା ମୋ ଦୂର ବିଦେଶୀ । ୧ ।

ଲକ୍ଷ ଦେବ ମୁହଁ— ସର୍ବଜାଣ ତୁହି
ଦେଉଛ ଚନ୍ଦେ ଅଧାର ।
କହ କହ କବ ଅଛୁ ଅଯବାଟେ
ଅସୁଛ ଅମର ଘର । ୬ ।
ରାତି ପାହିଗଲେ ସକାଳ ହୋଇଲେ
ଯାଇ ଯାଇ ଉଡ଼ି ଭୁହି ।
କାଆ କାଆ ରାବ ପକାଇଣ ବୋବ
ସଭଙ୍କି ଦେଉ ଉଠାଇ । ୩ ।
ରାଇଜଯାକର ଅଳଆ ମଇଳା
ନ ଥାଏ ତୋହୋର ଘୃଣା ।
ସୀତାଙ୍କଠାରେ ତୁ ଦୋଷେହା ହୋଇଛୁ
ଅଛି ଶାସ୍ତ୍ରେ ଏହା ଶୁଣା । ୪ ।
ସେହିଦନଠାରୁ ଶାପ ତୁ ପାଇଲୁ
ହେଲୁ ଅସୁନ୍ଦର ରୂପ ।
ଟେଶ ହୋଇଗଲୁ ଅପବାଦ ହେଲୁ
କଲୁ ଯେଣୁଁ ମହା-ପାପ । ୫ ।
( ଶ୍ରୀମତୀ ପାର୍ବତୀ ଦେବୀ )



ଶିଶୁ ଗୀତ ।
( ଚାଲି ଶିଖୁଥିବା ଶିଶୁ ପ୍ରତି ମାତାଙ୍କର ଉକ୍ତି )
ଧାଇଁ ଧାଇଁ ଚାଲୁଥାନ୍ତି ମୋର ନୀଳମଣି,
କ ମଧୁର ଶୁଭୁଅଛି ପଯୁର ବାଜେଣି । ୧ ।
ଇନ୍ଦ୍ର ବ୍ରହ୍ମା ଆଦ କୋଟି କୋଟି ଯେ ଦେବତା,
ମୋ ଧନଙ୍କ ଚାଲ ଦେଖି ହେବେ ଅଚମ୍ଭିତା । ୨ ।

ସରଗ ବୈକୁଣ୍ଠ ଆଦି ଯେତେ ଦିବ୍ୟଥାନ,
କାହିଁ ନ ପାଇବେ ସେ ଯେ ଏ ମଧୁର ତାନ । ୩ ।
ଖଣେ ଉଠି ଖଣେ ପଡ଼ି ଖଣେ ଧାଇଁ ଧାଇଁ,
ଆସୁଛନ୍ତି ମୋ କୋଳକୁ ହୋଇ ଧଇଁସଇଁ । ୪ ।
ବାରବ୍ରତ ତେରଓଷା କରିଥିଲି ମୁହିଁ,
ତାକ ଶୁଣି ବଜେ କଲ ବ୍ରହ୍ମାଣ୍ଡ ଗୋସାଇଁ । ୫ ।
ଦରିଦ୍ରରତନ ଅରେ ଭକ୍ତପରଶରି,
ରୁକ୍ମିଣୀ ଶଙ୍ଖାଳ ଅରେ ମୋ ନୟନତରି । ୬ ।
ଅନ୍ଧର ଲଉଡ଼ି ବାବୁ ଯୋଗୀଥାଳ ମୋର,
ସାର୍ଥକ ହେଲା ଏ ଆଖି ଦେଖି ରୂପ ତୋର । ୭ ।
ସତ୍‌ଭାଗ୍ୟବତୀ କିଏ ଅଛ ଏ ସଂସାରେ,
ଧାଇଁ ଆସ ଦେଖିଯାଅ ମୋ ଧନକୁ ଥରେ । ୮ ।

( ଶ୍ରୀମତୀ ପୀତାମ୍ବରୀ ଦେବୀ )

---

( ଶିଶୁକୁ ମାତାଙ୍କର ଗେଲ । )

ଆସ ରେ ଆସ ରେ ସରଗର ଚନ୍ଦ୍ର
ଆସ ରେ ନେଳପି ଭୁଲି
ଆସି ବସ ଧନ ଦେଖେଁ ତୋ ବଦନ,
ଝାଡ଼ିଦିଏ ଦେହୁଁ ଧୂଳି ।
ଉମା ଉମାସାଇଁ ସେବାରେ ମନାଇ
ଯାଚ ଯାଚ କେତେ ଭୋଗ
ପାଇଅଛୁ ଧନ ତୋ ପରି ରତନ,
ହୋଇଛୁ ଅମୃତଯୋଗ ।
ନାହିଁଏ ସଂସାରେ ଧନ ଦରବରେ
କେହିଅଛନ୍ତି କେତେ ହରଷ

ଲୋଡ଼ା ନାହିଁ ଆନ          ମୋର ବନ୍ଧୁ ଧନ,
ତୁ ଯେବେ ଅଛୁ ମୋ ପ୍ରାଣ ।
ରାଜ୍ୟ ହାତୀ ଘୋଡ଼ା          ମୋର ନାହିଁ ଲୋଡ଼ା
ଲୋଡ଼ା ନାହିଁ ଧନ ଜନ
ଲୋଡ଼ା ନାହିଁ ମୋର          ସରଗ ସମ୍ଭାର
ତୁହି ମୋ ରଙ୍କରତନ ।
ଧନରେ ତୁ ବେଳେ          ବସିଗଲେ କୋଳେ
ଛାତି ଫୁଲିଯାଏ ମୋର
ତତେ ଦେଖି ଧନ          ହୁଅଇ ଉଚ୍ଛନ୍ନ
ମୋର ପ୍ରେମ ପାରାବାର ।
ମୁନି ଋଷି ଯେତେ          ତପ କରି କେତେ
ଗଲେ ଉଇହୁଙ୍କା ହୋଇ
ତୋ ପରି ରତନ          ନ ପାଇଲେ ଧନ
ଯୁଗେ ଯୁଗେ ଗୃହିଁ ଗୃହିଁ ।
ଦେବ ଆରାଧନ          ଦେବ ଦରଶନ,
ଏମାନ ଗଲୁ ପାଶୋର
ମାତା ହୃଦୟରେ          ସିଂହାସନ ପରେ
ବସିଛୁ ରେ ଚକ୍ରେଶ୍ୱର ।

( ଶ୍ରୀମତୀ ପୀତାମ୍ବରୀ ଦେବୀ )

———

( ନବଜାତ ଶିଶୁ ପ୍ରତି । )

ଆରେ ଗଣ୍ଠିଧନ          ଦରିଦ୍ରରତନ
କେଉଁ ଦେଶେ ତୋର ଘର
କେଉଁ ସରଗରୁ          ଝୁଲି-ଝୁଲି ଆସି
ଥକିଗଲୁ ଦେହ ତୋର ?

ଘାଗ୍ରା ଅଉଁସାରେ, ସେକିଲେ ନାଥଁରେ
ନ ଛଡ଼େ ଦେହୁଁ ତୋ ବଥା,
ମାଲପା ହଳଦ ଦେଲୁ କେତେ ବୋଳ
ତବେତ ନ କହୁ କଥା ।

କେତେ ଯୋଜନରୁ ଚାଲି ଆସିବାରୁ
ବସିଗଲା ପିଠି କଣ୍ଠୀ,
ନ ପାରୁଛୁ ବସି ନ ପାରୁଛୁ ଉଠି
ଶୋଇଅଛୁ ହୋଇ ଚଢ଼ ।

କୁଆଁ କୁଆଁ ହୋଇ କାନ୍ଦୁ କାହିଁପାଇଁ,
କି କଥା କହିବା ପାଇଁ
କୋହ ଉପୁଜୁଛି, ନ କହୁଛୁ କିଛି,
କାନ୍ଦୁଛୁ ବିକଳ ହୋଇ ?

ଆମ ରାଇଜର ଭାବଭଙ୍ଗୀ ତୋତେ
ଜଣା ନାହିଁ ରେ ବିଦେଶି
ତୋର ଭାବଭଙ୍ଗୀ ଆମେ ନ ବୁଝୁଛୁ
ସେଥି କି କାନ୍ଦୁଛୁ ରୁଷି ?

ଦଣ୍ଡେ ଚାହୁଁଅଛୁ ଦଣ୍ଡେ ଶୋଉଅଛୁ
ଦଣ୍ଡେ ହେଉଅଛୁ ଠାଣି
କି ମନ୍ତ୍ର ଦେବୁ ବୋଲି ଏ ଦେଶକୁ
ଆସିଛୁ ରେ ଧନମଣି ?

ଷଠୀ ଦୂସେଇଙ୍କ କୋଳରେ ଶୋଇଛୁ
ମାରୁଅଛୁ ଭୁ ଘୁଙ୍ଗୁଡ଼ି
ତାଙ୍କ ଗୋଡ଼ା ଯେବେ ଧୋଇଲେଇ ହଉଛି,
ଦେଉଛନ୍ତି ଗୋଡ଼ ମୋଡ଼ି ।

ଶୈଶବ ବେଳରେ　　ଉମତ ପଣ୍ଡୁଳୁ
କାନ୍ଦୁଅଛୁ ଡର ପାଇ
ଷଠୀ ମାତା ପୁଣି　　କରୁଛନ୍ତି ଖେଳ
ହସି ଦେଉଅଛୁ ଗୃହଁ ।

( ଶ୍ରୀମତୀ ଶୀତାମୟୀ ଦେବୀ )

———

## ଅବୁଝା ପିଲା ପ୍ରତି ମାତାର ଉକ୍ତି ।

ଆରେ ବାପଧନ　　ଭାତ ନ ଖାଇଣ
ରୁଷିଗଲୁ କାହିଁ ପାଇଁ
କିଏ ସେ ମାରିଲା　　କିଏ ଗାଳିଦେଲା,
ମୋ ଆଗେ କହ ଫିଟାଇ ।
କହିଁ କହିଁ ହୋଇ　　କାନ୍ଦୁ କୋହ ହୋଇ
ମିଛ କଥାରେ ଭୁ ଧନ
ଡାକ ଡାକ କେତେ　　ନେହୁର ହେଲଣି,
ତୋ ମୁଖ ଦିଶେ ମଳିନ ।
ଧୂଳିରେ ଧୂସର　　ହୋଇଛି ଶରୀର
ଭୂଇଁ ତଳେ ଗଡ଼ାଗଡ଼ି
ଭୂଇଁ ତଳେ ଅଛି　　ଧୂଳିଆ ଯନ୍ତାରେ
ଦେକନ୍ତି ଦନ୍ତେ କାମୁଡ଼ି ।
ହଜିଲା ଦରବ　　ଦେବ ଖୋଜାଇ ରେ
କହ କସ ଗଲା ହଜି
ଭାଜିଲା ଦରବ　　ଦେବ ଗଢ଼ାଇ ରେ
କହ କସ ଗଲା ଭାଜି ।

ଛିଣ୍ଡିଲା ଦାଉଳ ଦେଖ ଶୁଣ୍ଠୀର ଡିଙ୍ଗି
ବାଘ ଛାଡ଼ିଲା ନ ବନ୍ଧୁ
ନ କହୁଣି କଥା ପଳାଇଗଲେ ରେ
ତୋ ମନ୍ଦ ଜାଣିବ କାହୁଁ ।
ଦାଣ୍ଡୁ ଅଧସ୍ଥାନକୁ ରୁଷି ପଳାଉଛୁ
କେବେ ଗୋଡ଼ାଇବ ମୁହିଁ
କୁଳ ଭୂଆସୁଣୀ ଦାଣ୍ଡକୁ ଗଲେ ରେ
କଲଙ୍କେ ପୂରବ ମଣ୍ଡି ।

( ଶ୍ରୀମତୀ ପୀତାମ୍ବରୀ ଦେବୀ )



## କୁହୁଡ଼ି ।

ଗଡ଼ୁଦଗ ଧାର କାନର ପଡ଼ୁଛି
କୁହୁଡ଼ି ଅସୁଲ୍ଲ ମାଡ଼ି
ଧୂଆଁରେ ଜଗତ ହୋଇଛି କଡ଼ିତ
ବଦଳିଲାଣି ଦେବ ସୃଷ୍ଟି ।
ଏ ଦେଶରେ କାହିଁ ନଥାଇଁ ଲାଗି ଛାଇଁ
ଏ ଧୂଆଁ ଅଇଲା କାହିଁ
ଆସ ଆସ ଭାଇ ଯିବା ଆଉ ସାଇ
ବୁଝିବା ଏଥିର ଭେଦନ
ସମୁଦ୍ର ପାଣିରେ କାଳନେଘ କାଳେ
ଲାଗିଲା ଜୁଆଁ କୁହୁଡ଼ି
ବାଲୁଆ ବାଘୁଡ଼ା ନଥାଇଁ ଜଳାଇଲେ
ଦୂରେ କୁଣ୍ଡେ ଉଡ଼ୁ ଛାଡ଼ି ।

ନିଆଁ ଲଉଲାଣି ସକାଳ ହେଲାଣି
ଧୂଆଁ ବ୍ୟାପିଗଲା ମନ୍ଦା
ଧରମ ଦେବତା ଉଡ଼ିଁଲେ ଆକାଶେ
ଏ ଧୂଆଁ ଯିବ ଉଭାଇ ।

( ଶ୍ରୀମତୀ ପୀତାମ୍ବର ଦେବୀ )

---

## କୋକିଳ ।

ବୃଷଭାନୁ ପଞ୍ଚ ଶବ୍ଦଳତେ ନୃତ୍ୟ ବସି
କୁହୁକୁହୁ ସ୍ୱନ ଦେଇ ଯାଉ କୋଣେ ଥିପି ॥
କୁଆପରି ଅଟେ ତୋର ରୂପ ଅସୁନ୍ଦର
କହଏ କଭମ୍ଭ ତୋର ରୂପକୁ ଆଦର ॥
ଚୂତ ମୁକୁଳ ଆସ୍ୱାଦ କରଣରୁ ତୁମ୍ଭ
ତୋ ପଞ୍ଚମକୁରେ ଶୁଣି ମତାଉ ଭୂ-ମନ୍ଦ ॥
ଯଶୋଦାଁ କୁମାର କୃଷ୍ଣ ଗୋପପୁର ଛାଡ଼ି
ମଥୁରାକୁ ଭଜେକଲେ ନୋଇଲେ ବାହୁଡ଼—
ସେ କାଳରେ ଯଶୋବନ୍ତୀ ନନ୍ଦର ଘରଣୀ
କାନ୍ଦି କାନ୍ଦି ତଟେତ.ପଣ୍ଡା କହୁଥିଲେ ବାଣୀ ॥
ସେ ଉଦନ୍ତ ନେଇ ତୁମ୍ଭ କାହିଁ ଗଲୁଉଡ଼ି
ନୋଇଲେ ସେ, ନୋଇଲୁ ତୁ ଗୋପକୁ ବାହୁଡ଼ ॥
କହଏ ଶୁଣନ୍ତୁ ତୋର ବସନ୍ତରେ ଗାନ
ଅନ୍ୟଋତୁରେ ତୋ ଗୀତ ଶୁଣିଛି ମୋ କାନ ॥
ତୋ ମଧୁରଗୀତ ଶୁଣି ଅପାର ଆନନ୍ଦେ
ମନ ମୋର ଯାଏଁ ଶ୍ରୀକୃଷ୍ଣଚରଣାରବିନ୍ଦେ ॥

## ବାଉଦାସଙ୍କ ଭଜନ ।

ରୂପ ତୋର ଅଟେ କଳା ଗୁଣ ଭାରି ଗୋରା
ତୋ ରୂପ ପତ୍ରଗହଳେ ଲୁଚିଯାଏ ପରା ॥
ଖାଲି ତୋ ମନମୋହନ ସ୍ୱର ଶୁଭୁଥାଏ
ତୋର କଣ୍ଠ ପାଇବାକୁ ଇଚ୍ଛନ୍ତି ସଭଏ ॥

( ଶ୍ରୀମତୀ ପୀତାମ୍ବରୀ ଦେବୀ )

---

## ହଳଦୀବସନ୍ତ ପକ୍ଷୀ ।

ଅରେ ହଳଦୀବସନ୍ତ କାହୁଁ ଉଡ଼ିଆସି
ବାଡ଼ିଆଡ଼ ଆମ୍ବଡାଳେ ଗଲୁ ତୁହି ବସି ।
କେଡ଼େ ମଧୁର ତାନରେ ଗାଇଲୁ ତୁ ଗୀତ
ଲାଗୁଅଛି ଏହା ମତେ ଭାରି ଆଚମ୍ବିତ ॥
କହ କିଏ ଶିଖାଇଲା ଏ ମଧୁର ତାନ
ଏକଧ୍ୟାନେ ଏକଲୟେ କରୁଅଛୁ ଗାନ ॥
ହଳଦୀ ଲଗାଇ ସୀତା ଯେବେ ଶିଶୁକାଳେ
ମୁହୁସୁଲୀ କୋଳେ ଥାଇ କାନ୍ଦିଲେ ବିକଳେ
ବେଳ କାଳ ଚିହ୍ନି ତୁହି କାହୁଁ ଉଡ଼ିଆସି
ଜନକ ବଗିଚାଡାଳେ ରାବ ଦେଲୁ ବସି ॥
ସୁଚତୁରୀ ମୁହୁସୁଲୀ ତୋର ଡାକ ଶୁଣି
'ସୀତା ! କୋଇଁ' ବୋଲି ତାହା ବୁଝାଇଲେ ପୁଣି ॥
ସୀତା ତୋର ଡାକ ଶୁଣି କାନ୍ଦ ଗଲେଭୁଲି
ତତେ ଧରିବାକୁ ସୀତା ଲଗାଇଲେ ଅଳି ॥
ମୁହୁସୁଲୀ ଧାଇଁ ଯାଇଁ ଜନକ ରାଜାଙ୍କୁ
କହି ତତେ ଧରିଆଣି ଦେଲେଟି ଜେମାଙ୍କୁ

ବନହଳଦୀ ତୋ ଦେହେ ବୋଳଦେଲେ ସୀତା
ମୁଣ୍ଡଯାକ କଜଳରେ କାଠିଦେଲେ ଚିତା ॥
ଅପରୂପ ବେଶକର ଛାଡ଼ିଦେଲେ ତତେ
ସେହୁ ଦିନୁ ଏବେଯାଏ ତୁ ବୁଲୁଛୁ ଜଗତେ ॥
ସେହୁ କାଳୁଁ 'ସୀତା କୋକ' ସବ ଗୁଣି ଗୁଣି
କେତେ ଅବୁଝା ଶିଶୁଙ୍କୁ କରୁଅଛୁ ଭୁନ ॥
ଏ ସଂସାରେ ଦେଖୁଅଛି ମୁହିଁ ନିରନ୍ତର
ରୂପସୁନ୍ଦରର ଗୁଣ ନଥାଏ ସୁନ୍ଦର ॥
ରୂପରେ ସୁନ୍ଦର ଅଟୁ ଗୁଣରେ ସୁନ୍ଦର
ରୂପୁଁ ଗୁଣୁଁ ବଳ ପଡ଼ୁଅଛି ତୋ ସ୍ୱସ୍ୱର ॥
ତୋପର ରୂପଗୁଣରେ ବିଭୂଷିତ ହୋଇ
ହେଉଏ ଜଗତ ଧନ୍ୟ, ଧନ୍ୟ ହୁଏଁ ମୁହିଁ ॥

( ଶ୍ରୀମତୀ ସୀତାମ୍ବିକା ଦେବୀ )

---

## ବଗ ।

ପାଣି କୂଳେ କୂଳେ ଠେଙ୍ଗା ବଗଟିଏ
ବୁଲେ ଡଗଡଗ ହୋଇ
ପାଣି କୂଳୁଁ ମାଛ ଅଣ୍ଟେ ନିଏ ଧରି
ଉଦର ପୋଷିବା ପାଇଁ ॥
ଏକ ଧ୍ୟାନରେ ବସିଥାଏ କୂଳେ
ମାଛ ଖାଇବାକୁ ଚାହିଁ
ମୀନ ମାଛ ଯେବେ ପଡ଼େ ତା ହାବୁଡ଼େ
ଅଣ୍ଟେ ଦିଏ ତାକୁ ଯାକି ॥

ଧୋବ ଫରଫର ଦଢେଇ ତୋ ଶରୀର
ପାଣି ପଢ଼େଙ୍କ ଛୁଞ୍ଚିହୋଇ
ନିଜ ସକାଳକୁ ଦେଏ ତୋ ଲୁଗାକୁ
ସନ୍ଧ କାଣ୍ଡଏ ଧୁଇ !
ତୋର ସାନଭାଇ କାଣ୍ଡିଆ ବଗରେ
କାଣ୍ଡି ବୋଲଥାଏ ଅଙ୍ଗେ
ତୋ ଶରୀରେ କାହିଁ ନ ଲାଗେ ପଙ୍କ ରେ
ହେବ ଜମ୍ବୁ କେଉଁ ରଙ୍ଗେ ?
ପାଣି କୂଳେ ବୁଲେ ଅଧାର ପାଇଁକି
ହନଯାକ ବୁଲୁଥାଉ
ସଞ୍ଜ ହୋଇଗଲେ ବଗୁଲୁସଙ୍ଗେ ତୁ
ଗଛ ଡାଳକୁ ପଳାଉ ।
ତୋହଠାରୁ ଆଜି ଶିଖିଲି ଏଥର
ଏ ସଂସାରେ ଥୋକେ ଲୋକ
ଜୀବନ ପାଇଁକି କାଟୁଥ ପଙ୍କକୁ
ଘାଣ୍ଟୁଥାନ୍ତି ହନଯାକ ।।

( ଶ୍ରୀମତୀ ପୀତାମ୍ବରୀ ଦେବୀ )

---

ଶୁଆ ।

ଛୋଟକୁଆଳ ଛନ୍ଦକ ମୁହଁ ମହାଆନନ୍ଦରେ
ଦେଖିଲି ମୁଁ ଶୁଆଟିଏ ବସିଥିଲା ଗଛରେ ।।
ପାଲି ଖଣ୍ଡେ ଛଦାଲା ଦେଏ କହ କହ ମହେ
ନାଲି ଠୁକୁଠୁକୁ ଥଣ୍ଟ କଳୁ ଦୁ କେମନ୍ତେ ।।
ସିନ୍ଦୁର ବୋଳକୁଆର କାଉଛୁ ବେକରେ
ସାଗୁଆ ଅଙ୍ଗା କେହ୍ଲାଲି ହୋଇଛୁ ଅଙ୍ଗରେ ।

ଯେବେ ଆସିଛୁ ତୁମା ସଙ୍ଗେ ଖେଳିବା ନିମନ୍ତେ
ବିଳମ୍ବ ନ କର ପାଖେ ଆସ ରେ ତୁରନ୍ତେ ।
ଚଢ଼ିବି ଇଚ୍ଛା ହେଉଅଛି ଆସ ଅଶ୍ୱ ଭଳି
ଧରିଅଣି ତାକୁ ହେଳେ ଭାଜନ ଚନ୍ଦ୍ରଇଁ ॥
ତୋର ଜେଉଁ କାଥଁ ଗୀତ ବୁଝି ନ ପାରନ୍ତି
ଆସ ବୁଝାଯିବା ଗୀତ ଶିଖାଇବ ମୁହିଁ ॥
ନଇଲେ ଶିଖା ତୁ ମତେ ତୋ ଗୀତର ଭାଷ
ତୋ ଶରୀର ଯାଏଁ ମୁହିଁ ପାଏଁ ତୋର ସ୍ୱର ॥
ଦଇଁତ୍ୟଙ୍କ ଗହୁଥିବା ନାମ ଦିବାଲିଶି
'ରାମନାମ ସତ୍ୟ' ବୋଲି ଜଗତରେ ଘୋଷି ॥
ଥିବି ମୁହିଁ ପାଖେ ତୋର ଲାଗିଥିବି ହେଳେ
ସାଙ୍ଗ ହୋଇ ଉଡ଼ୁଥିବା ନକ୍ଷ ଉଲ୍ଲାସରେ ॥
ଖାଇବାକୁ ଦେବି ତୋତେ ସୁପକ୍ୱ ରସାଳ
ପିଇବାକୁ ଦେବି ତତେ ଝରଣାର ଜଳ ॥
ଶୋଇବା ପାଇଁ କି ତତେ ଗଛଡାଳେ ନେଇ
ହଂସୁଲୀ ଭଳିକା ଅଣି ଦେବି ମୁଁ ଶେଯାଇଁ ॥
ଦୟାମୟ ପ୍ରଭୁ ନାମ ଗାଉଥିବା ଦହେଁ
ନାଚୁଥିବା ଉଡ଼ୁଥିବା ଦେଖିବେ ସଭିଏଁ ॥

( ଶ୍ରୀମତୀ ପୀତାମ୍ବର ଦେବୀ )

---

## ଗ୍ରୀଷ୍ମ ସମୟରେ ଅକାଳ ବରଷା ।

ଅକାଳରେ ମେଘବରଷା ହେଲା ବସନ୍ତକାଳେ
ପୂରିଗଲା ବିଲପୋଖରୀ ଘୋର ବରଷାଜଳେ ॥
କୃଷିମାନେ ଧାନଗଦାଙ୍କୁ କାହିଁ କ୍ଷେତରୁ ଆଣି
ଗଦା ମାରିଥିଲେ ଖଳାରେ କେତେ ଯତନେ ପୁଣି ॥

ଗଦାଯାକ ପାଣି ପଶିଲା ଗଜା ହୋଇଲା ଧାନ
ବରଷକଯାକ କ ଖାଇ ବଞ୍ଚାଇବେ ଜୀବନ ॥
ଯେ କାଳରେ ଯେଉଁ ପଦାର୍ଥ ଲୋଡ଼ା ନ ଥାଏ ମୋର
ଅମୃତ ପିଣ୍ଡୁଲା ହେଲେହେଁ, ପିତା ଲାଗେ ମୂକର ॥
ଜଳବିନ୍ଦୁନେ ଏ ସଂସାରେ ସର୍ବେ ଉଚ୍ଛନ୍ନ ଯିବେ
ତଥାପି ଅକାଳବରଷା ଲୋଡ଼ା ନାହିଁ ଏ ଭବେ ॥
ଯେଉଁକାଳେ ଯେଉଁ ଦରବ ଲୋଡଥାଏ ସଂସାର
ସେକାଳେ ପାଇଲେ ତାହାଠି ହୁଏ ସୁଖ ଅପାର ॥
ଆରେ ଚଷା ଭାଇ ଶୁଣ ରେ ମୋର କ୍ଷୁଦ୍ର ରଚନା
ଲୋଡ଼ା କ ଅଲୋଡ଼ା ବରଷା କାହୁଁ ତୁମ୍ଭଙ୍କୁ ଜଣା ?
ଋତୁକୁ ଅଋତୁ କରନ୍ତି କେଉଁ ଉଦ୍ଦେଶ୍ୟ ପାଇଁ
ତାହା ତୁ କେମନ୍ତେ ଜାଣିବୁ , ଜାଣେ ଜଗତସାଇଁ ॥

( ଶ୍ରୀମତୀ ପୀତାମ୍ବରୀ ଦେବୀ )

---

ଭଜନ ।

ଆହେ ବିଶ୍ୱମ୍ଭର    ଦୟାର ଆଧାର
ଘୋର ପାପ ଭାର    କର କର ଦୂର ॥
ସିଞ୍ଚି ହୃଦେ ପ୍ରେମ    ଆହେ ପ୍ରାଣାରାମ
ବୁଣି ଆଶାବୀଜ    ତାପ ଦୂର କର ॥
ସଂସାରର ଦୁଃଖ    ନ କରୁ ବିମୁଖ
ତବ ଆଜ୍ଞା ପାଳ    ଧନ୍ୟ ହେଉ ନର ॥
ମୁଁ ଯାହାକୁ ମଣି    ଥାଏଁ ଆପଣାର
କରନ୍ତୁ ମତେ ବା    ନ କରନ୍ତୁ ପର,
ତାଙ୍କୁ ସୁଖ ଶାନ୍ତି    ଦିଅ ନିରନ୍ତର
ବିଶ୍ୱପ୍ରେମେ ତାଙ୍କୁ    କର ଜର ଜର ॥

ଦିଅ ହେ ବିଶ୍ୱାସ　　ନ ହୁଏଁ ନିରାଶ
ଏ ନିରସ ପ୍ରାଣେ　　ଆଶା ଆଣି ଭର ॥
ଯେତେ ଦୁଃଖ ତାପ　　ଦିଅ ହେ ଅମାପ
ତାହା ସହିବାକୁ　　ମନେ ଦିଅ ବଳ ॥
ତୁମ୍ଭର ଗରିମା　　ନାହିଁ ତାର ସୀମା
ତାହା ଅନୁଭବୁ　　ଜୀବନରେ ନର ॥
ରହୁ ତବ ନାମ　　ଜପୁ ତବ ପ୍ରେମ
ବିଶ୍ୱହିତପାଇଁ　　କାନ୍ଦୁ ଏ ଅନ୍ତର ॥
ଜଗତ ମଙ୍ଗଳ　　ସାଧିବାକୁ ବଳ
ଧନ ମନ ବେଳ　　ଦିଅ ହେ ଈଶ୍ୱର ॥

( ଗୋପାଳ ଚନ୍ଦ୍ର ପ୍ରହରାଜ )

---

## କି ବର ମାଗିବି ?

ବର ମାଗୁ ନାହିଁ,　　କିଛି ହେ ତୁମ୍ଭଙ୍କୁ
ବର ମାଗୁ ନାହିଁ କିଛି, (ହେ ବନ୍ଧୁ)
ଯାହା ଦେଇଅଛ,　　ତାହା ଭୋଗିବାକୁ
ମୋର କି ଆଇଷ ଅଛି (ହେ ବନ୍ଧୁ) । ୧ ।
ଅନୁଗ୍ରହ ଭିକ୍ଷା,　　ନ କରେଁ ମୁଁ ପ୍ରଭୁ
ନଛତେଁ ମୁଁ ତବପାତ୍ର
ଏତେକ ମାତର　　ଇଚ୍ଛଇଁ ହେ ବନ୍ଧୁ
ଥାଉ ତୁମ୍ଭପଦେ ଆଶା । ୨ ।
ଧନ, ଜନ, ଶିକ୍ଷା,　　ମାଗୁଛନ୍ତି ଯେହୁ
ଦିଅ ତାଙ୍କୁ ଭର କର

ବର ଲାଗି ଯେନ୍ତୁ, ରହନ୍ତି ଅନଶ
ହଅ ତାଙ୍କ ମନ ଭର । ୬ ।
ନ ମାଗେଁ ମୁଁ ବର, ଦେଖ ଏ ଅନ୍ତର,
ଛଡ଼ ଦେଖ କସ ଅଛୁ
ତୁମ୍ଭ ସେବଜନ, ତୁମ୍ଭର ବିଧାନ
ଶିର ଶିରୀ ବେଦଅଛୁ । ୭ ।
ମୋ ବର ମୋ ହୃଦେ, ଅଛଇଟି ବନ୍ଧ,
ନ ଖୋଜେଁ ମୁଁ ଅନ୍ୟ ବର
ତୁମ୍ଭଠାରେ ମନ, ହେଉ ତନମୟ
ଭଜୁ ତୁମ୍ଭଙ୍କୁ ଅନ୍ତର । ୮ ।

( ଶ୍ରୀମତୀ ପ ାମୁଖୀ ଦେବୀ )

---

## ଅଧିକାର ।

ନ ଇଚ୍ଛଇ ମନ, କରିବାକୁ ସଦା, ତୁମ୍ଭ ପରେ ଅଧିକାର
ତୁମ୍ଭ ଅଧିକାରେ, ଥାଉ ସର ଜନ, ଏହିକି ବାଞ୍ଛେ ଅନ୍ତର । ୧ ।
ତୁମ୍ଭର ଏ ଜୀବ, ତୁମ୍ଭର ସଂସାର, ତୁମ୍ଭର ସକଳଜନ
ଏ ବ୍ରହ୍ମାଣ୍ଡ ପରି, ମାଲ ମାଲ ବିଶ୍ୱ, ଅଛଇ ତୁମ୍ଭ ସୃଜନ । ୨ ।
ମୋହୋ ପରି ଜୀବ, ଖରବ ଖରବ, ତୁମ୍ଭର ଅଛନ୍ତି ଜାଣେ
ଏଥିପାଇଁ ପ୍ରଭୁ, ଏକା ଅଧିକାର, ନ କରିପାରେଁ ମୁଁ ଜଣେ ।୩।
ମୋ ପରି ଯଦ୍ୟପି, ଅଛନ୍ତି କେ କେତେ, ତୁମ୍ଭରଟି ପଣେ ପଣେ
ଏ ହୃଦମନ୍ଦରେ, ଦବାନଣି ଏକା, ଅଧିକାରୀ ଅଛ ଜଣେ ।୪।
ଏହି ଅଧିକାର, ବିସ୍ତାରିବାପାଇଁ, ମୋର ନାହିଁ କଛୁ ଲୋଡ଼ା
ମୋ ଶରୀର, ମନ, ତୁମ୍ଭରହି ଧନ, ସବୁ ତ ତୁମ୍ଭରି ଗଢ଼ା । ୫ ।



## ନିଷ୍କାମ ।

ଥରେ ଯେବେ ପ୍ରଭୁ ପଡ଼ିଲ ହାବୁଡ଼େ
କଥାଏ ହ କଥା ପଚାରନ୍ତି ଗୂଢ଼େ । ୧ ।
କିପାଇଁ ହୋଇଛ ଏତେ ମନ ବ୍ୟଥା ?
କିପାଇଁ ଖଣ୍ଡିଛ ଏତେ ବଡ଼ କଥା । ୨ ।
ତୁମ୍ଭ ମନ ସୁଖ ତୁମ୍ଭେ କରୁଅଛ
ମୋସୁଖ ପାଇଁକି ଦଣ୍ଡେ ନ ଭାବୁଛ । ୩ ।
ମୋ ବଇଭବ ଦେଖି ହେବାପାଇଁ ଖୁସି
ଧାଉଁଛ ଜଙ୍ଗଲେ ମତେ ହବାନଶି । ୪ ।
ଯେତିକି ସମ୍ପଦ ସେତିକି ଜଞ୍ଜାଳ
ଯେତେ ଜାଲ ଛନ୍ଦା ସେତିକି ବିକଳ । ୫ ।
ଏଥିପାଇଁ ପ୍ରଭୋ, ନ ମାଗେଁ ମୁଁ କିଛି
ନେଇଯାଅ ସବୁ, ଯାହା ମୋର ଅଛି । ୬ ।
ତାହା ହେଲେ ପଶ ସବୁ ଚିନ୍ତା ଛାଡ଼ି
ପଡ଼ିଥିବ ଏକା ତବପାଦେ ଜଡ଼ି । ୭ ।
ଚାହିଁଥିବ ଏକା ତୁମ୍ଭରି ବଦନ
ସେବୁଥିବ ଏକା ତୁମ୍ଭରି ଚରଣ । ୮ ।
ମୋ ସୁଖପାଇଁକି ନ କରିବି କିଛି
ଜଗତ ସୁଖକୁ ସାଧିବାକୁ ଇଚ୍ଛି । ୯ ।
ଏବେ ଯାହା ପ୍ରଭୁ, ଦେଖୁଛି ନିତ୍ୟନ
ମୋ ଘର, ମୋ ପୁଅ, ମୋର ଧନଜନ । ୧୦ ।
ଏହା ଛଡ଼ା ମୋର ଅପର ସାଧନା
ନାହିଁ ଟି, ଦେଖୁଛି, ହାସ୍ୟ ବିଡ଼ମ୍ବନା । ୧୧ ।
ଏ ସକଳି ନାଥ ସହଜେ ଛଡ଼ାଇ
ନବ ବିଶ୍ୱପ୍ରେମେ ଦିଅ ହେ ବୁଡ଼ାଇ । ୧୨ ।

## ବିଡମ୍ବଣ ।

ଦେଖାଉଛ ପ୍ରଭୁ ଏକି ବିଡମ୍ବଣ,
ତୁମ୍ଭର ରାଜ୍ୟରେ ଘଟେ ଅଘଟଣ ! ।୧।
ତୁମ୍ଭର ନାହିଁ କି କୋରଡ଼ା ଶାଙ୍କୁଳା ?
ତୁମ୍ଭର ନାହିଁ କି ଦୋଷୀ ବନ୍ଧଶାଳା ? ।୨।
ପାର୍ଥିବ ସମ୍ରାଟ ଏସବୁ ଦେଇଣ
କରୁଛନ୍ତି ଅପରାଧୀଙ୍କୁ ଶାସନ ।୩।
(କିନ୍ତୁ) ତୁମ୍ଭ ରାଜ୍ୟେଥାଇ ନମାନେ ତୁମ୍ଭଙ୍କୁ,
ନ ଦଣ୍ଡୁଛ କିଆଁ ଏପର ଲୋକଙ୍କୁ ।୪।
ଏଥିପାଇଁ ପାର୍ଥେ, ହୋଇଥାନ୍ତା ଭଲ,
ହୋଇଥାନ୍ତା ସାନ ରାଇଜ ତୁମ୍ଭର ।୫।
ତାହା ହେଲେ ଦୋଷୀ ପାଉଥାନ୍ତେ ବେଡ଼ି ।
ପାପିଏ ଯାଆନ୍ତେ ବନ୍ଧଘରେ ପଡ଼ି ।୬।
ମନେ ମନେ ପୁଣି ପାଞ୍ଚଇଁ ମୁଁ ହେଲେ
ଦଣ୍ଡିବାକୁ ପାପୀ ପାର ଅବହେଳେ ।୭।
କିନ୍ତୁ ବଳସତ୍ତ୍ୱେ ନକାଢ଼େ ଯେ ବଳ
ସେହି ଅଟେ ସିନା ଭବେ ବଳୟାର ।୮।
ବିଭବରେ ଦାନ, ଶକ୍ତିଥାଇ କ୍ଷମା
ଅଟଇ ଏକାହି ତୁମ୍ଭର ମହିମା ।୯।
ପୃଥ୍ୱୀର ସମ୍ରାଟ ପର ହନ୍ତ ଯେବେ
ସୃଷ୍ଟି ଛାରଖାର କ୍ଷଣେ ହନ୍ତା ତେବେ ।୧୦।
ଏଥିପାଇଁ ପ୍ରଭୁ ଦେଖି ନ ଦେଖୁଛ
ଏହି ଅଘଟଣ ନିଜେ ସହୁଅଛ ।୧୧।

( ଶ୍ରୀମତୀ ପୀତାମ୍ବରୀ ଦେବୀ )

## ଗୋଲକ ଧନ୍ଦା

ଅଜନମୁଁ ଲୋକମୁଖୁଁ ମୁହିଁ ଶୁଣେ
ଏ ସାରାବିଶ୍ୱର ରଚୟିତା ଜଣେ । ୧ ।
ଜଣକର ହାତ ଗଢ଼ିଛି ସଂସାର
ସ୍ଥାବର, ଜଙ୍ଗମ, ସୃଷ୍ଟି ଚରାଚର । ୨ ।
ସଂସାରେ ଦେଖେ ମୁଁ ନିତ୍ୟ ପ୍ରତିଦିନ
ଦ୍ରବ୍ୟ ବୁଝାଏ କାରିଗରପଣ । ୩ ।
ଯେଉଁ କାରିଗର ଅଟେ ବଳିୟାର
ତାହାରୁଁ ନିକୃଷ୍ଟ ନୁହଇ ତାହାର । ୪ ।
ନିରସା ପଦାର୍ଥ ଦେଖି ବାରନ୍ତୁଏ
ଏ ଗଢ଼ଣ କେଉଁ ତାହାଠର ନୂନେଁ । ୫ ।
ବିଜ୍ଞ କାରିଗର କାମ ସଙ୍ଗେ ସର
ନୁହଇ ମୂରୁଖ ହାତ କାରିଗରି । ୬ ।
ତେବେ କିଆଁ ଏହି ମରତଗ୍ରତରେ
ନାନାଜାତି ସୃଷ୍ଟି ହେଲା ସବୁଠାରେ ? । ୭ ।
ଏକା କାରିଗର ହାତରୁ କିପରି
ତାହାରେ ଅରୂପ ରୂପ ଭଲ ଭଲ ? । ୮ ।
ଆଖିକି ଯାହାକି ଦିଶଇ ଉଜ୍ୱଳ
ତା ମଧ୍ୟରେ କିଏ ଭରିଲା ଗରଳ । ୯ ।
ଅମୃତ ସାଗରୁ ମନ୍ଥନ କାଳରେ
ହଳାହଳବିଷ ଝରେ କି ପ୍ରକାରେ ? । ୧୦ ।
କିଏ କରିଥିଲା ଅମୃତର ସୃଷ୍ଟି
ବିଷ ସରଜିଲା କେଉଁ ପରମେଷ୍ଠୀ ? । ୧୧ ।
ଯିଏ କରିଥିଲା ସୃଜନ ସର୍ଜନ
ସିଏ ପୁଣି ସୃଷ୍ଟି କଲାଟି ଦୁର୍ଜନ ? । ୧୨ ।

ସେଏ ଗଢ଼ିଥିଲା ସୁଗନ୍ଧ କୁସୁମ
କେ ତହିଁ ଭରିଲା କୀଟ ନିରିମମ ? । ୧୩ ।
ସେଏ ଗଢ଼ିଥିଲା କମନୀୟ ରୂପ
କେ ପୁଣି ଭରିଲା ତହିଁ ମହାପାପ ? । ୧୪ ।

ଏସବୁ ସମସ୍ୟା ଗୋଲକଧନ୍ଦାରେ
ପଡ଼ି ଦର୍ଶନ୍ତି ବିଷମ ଅନ୍ଧାରେ । ୧୫ ।
ଜଣେ କାରିଗର ହୋଇଥାନ୍ତେ ଯେବେ
ଏତେ ବିଡ଼ମ୍ବଣ ନଥାନ୍ତାଟି ଭବେ । ୧୬ ।

ପୁଣି ପାଞ୍ଚଇ ମୁଁ ବ୍ୟାକରଣ ସାରେ
ଏଥି ନିପାତନ ପଡ଼ଇ ହାବୁଡ଼େ । ୧୭ ।
ଭେଦେବି ଗୋଲକଧନ୍ଦା ଛଡ଼ୁନାହିଁ,
ନିୟମରୁ ବଳେ ନିପାତନ କାହିଁ ? । ୧୮ ।
ନିପାତନ ସଂଖ୍ୟା ନିୟମୁଁ ବଳଲେ
ନିପାତନ ହୁଏ ନିୟମଟି ବଳେ । ୧୯ ।

ସେଏସେ ନିୟମ, ସେଏ ନିପାତନ,
ଉଣ୍ଡିଲେ ମୁଁ ଯେତେ, ନହୁଏ ବାରଣ । ୨୦ ।
ସେଏସେ ସୁଜନ, ସେଏ ଦୁରୁଜନ,
ଏ ମହାଧନ୍ଦା ନହୁଏ ସାଧନ । ୨୧ ।

ବୁଝିଲି ବୁଝିଲି, ଅରେ ବାଇମନ !
ଏ ସମସ୍ୟା ବଳେ ହେବ ସମାଧାନ । ୨୨ ।
ଭଲ ମନ୍ଦ ଯେବେ ନଥାନ୍ତା ସଂସାରେ
ଭଲର ଗାରିମା ଜାଣନ୍ତେ କି ନରେ ? । ୨୩ ।

ଭଲ ସଙ୍ଗେ ମନ୍ଦ ଲୋକେ ତୁଳିବାକୁ
ଭଲ ପାଖେ ପ୍ରଭୁ ବୁଝିବେ ମନ୍ଦକୁ । ୨୪ ।

କ୍ଷଣକାଳ ପାଇଁ ମନର ସ୍ୱାଜତ୍ୱ
ଭଲ ଘଉଡ଼ାଇ ମନ୍ଦକୁ ସନ୍ମତ । ୨୫ ।
ମନ୍ଦ ମାଡ଼ିଆସେ ନଈବଢ଼ି ପରି
ପ୍ରଳୟ ଜଳରେ ସବୁଯାଏ ବୁଡ଼ି । ୨୬ ।
ଦେଖ ପରକ୍ଷଣେ ବଢ଼ି ଛାଡ଼ିଯାଏ
ସୁଶ୍ୟାମଳ ଶସ୍ୟେ ମହୀ ଶୋଭାପାଏ । ୨୭ ।
ସେମନ୍ତ ଅଜ୍ଞାନ ପାପ ଅନ୍ଧକାର
ବୁଡ଼ାଇ ଦିଅଇ ପୁଣ୍ୟକୁ ସତ୍ୱର । ୨୮ ।
କିନ୍ତୁ, ପରକ୍ଷଣେ ପୁଣ୍ୟେ ସୁଶ୍ୟାମଳ
ହୋଇ ହସିଉଠେ ଏହି ଧରାତଳ । ୨୯ ।
ଯୁଗେ ଯୁଗେ ଲାଗିଅଛି ଏହି ଖେଳ
ପୁଣ୍ୟ ସଞ୍ଚିବାକୁ ବୁଡ଼ିନାହିଁ ବେଳ । ୩୦ ।

( ଶ୍ରୀ ଚୋଲଚନ୍ଦ୍ର ପ୍ରହରାଜ )

---

## ହରଣୀ ସ୍ତୁତି ।

ଗରଭ ଭାରରେ ହରଣୀ, ସଙ୍ଗେ ଶିଶୁବାଳକ
ଯେବେ ଯାଉଥିଲା ବନରେ, ଚଳେ ନଥିଲା ବଳ ॥
ଏମନ୍ତ ସମୟେ ଭେଟିଲା, ଶବରକୁ ଆଗରେ
ଧନୁ ଧରି ବାଟ ଜଗିଛି, ଶର ଯୋଖି ଧନୁରେ ॥
ତରସ୍ତ ହୋଇଣ ହରଣୀ ଲେଉଟିଲା ପଛକୁ
ଦେଖିଲା ଜଳୁଛି ହୁତାଶ, ଫାଟିଗଲା ତା ବୁକୁ ॥
କଡ଼ ପଟେ ଅବା ପଳାଇ ଯିବ ବାହାର କରି
ଦେଖିଲା ସେ ଦୁଇ ପାଖରେ ଜାଲ ଅଛଇ ଘେରି ॥
ଅକାମରହୋଇ ହରଣୀ ଠିଆ ହେଲା ସେଠାରେ
ଗୋଡ଼ାଇଲା ତାକୁ କୁକୁର, ବ୍ୟାଧ କୁଦାଇ ମାରେ ॥

ଗରଭାସ ଯୋଗୁଁ ହରଣୀ ନ ପାରଇ ଦଉଡ଼ି
ତର ନ ସହଇ ନିମିଷେ, ବ୍ୟାଧ ପକାଏ ରଡ଼ି ।
ପଛରେ ଅଜ୍ଞାନ ଶିଶୁଏ ମାତା ମୁଖକୁ ଚାହିଁ
ତହଳ ବକଳ ହୋଇଣ ଉଦ୍ବେ ହେଲେଣି ବାଇ ।
ହରଣୀ ଭାବଇ ଏକାଳେ ଗଲେ ଯାଉ ମୋ ଜୀବ
ଗରଭର ଶିଶୁ ମୋ ସଙ୍ଗେ ଛଟପଟେ ମରବ ॥
ମରିଯିବେ ପୁଣି ଏଷଣି ମୋର ପିଲା ବାଳୁତ
ସାହା ନାହିଁ କେହି ମୋହର, ପୂରିଗଲା ନିୟୃତ ॥
ଏମନ୍ତ ବଶ୍ୱର ନନ୍ଦଶେ ବୁଦ୍ଧିବାଣ୍ଠ ତାହାକୁ
ସ୍ମରଣା କଲା ଈଶରେ ବୁଜ ଚକ୍ଷୁ ବେନକୁ ॥
ରଖ ବା ନ ରଖ ପ୍ରଭୁ ହେ ! ନାହିଁ ଜୀବନେ ଆଶ
ଜୀବରେ ଜନମ ଲଭିଣ ପୂରିଲାଣି ଆୟୁଷ ॥
ଆଜ ହେଉ କାଲି ହେଉ ବା ନିଶ୍ଚେ ମରନ୍ତି ଦନେ
ଦେବତା ହୋଇଲେ ମରଇ ଜନ୍ମି ମର୍ତ୍ତ୍ୟଭୁବନେ ॥
ସଂସାରର ମାୟା ଖେଳନା ମୋର ଯାଇଛି ପୂରି
ତହିଁ ପାଇଁ ନାହିଁ ମନରେ କଳପଣା ମୋହରି ॥
ବାଳୁତ ପୁଏ ମୋ ପଛରେ, ଅସିଛନ୍ତି ଗୋଡ଼ାଇ
ଏ ସଂସାରେ ଖେଲ କୌତୁକ ଖେଳ ନାହାନ୍ତି ସେହି ॥
ଗରଭରେ ଅଛି ମୋହର ଯେଉଁ ବାଳୁତବଛ
ସଂସାରର ଦୁଃଖ ସୁଖ ସେ ଭୋଗ ନକଲା କଛି ॥
କେତେ କେତେ ମହା ବିପଦେ ପଡ଼ି ଅତୁର ପ୍ରାଣୀ
ସ୍ମରଣା କରି ତୁମ୍ଭଙ୍କୁ, ଦୁଃଖ ହୋଇଛି ପାଣି ॥
ସାତ ତାଳ ଜଳେ କୁମ୍ଭୀର ମୁଖେ ବାରଣ ପଡ଼ି
ରଖ ରଖ ବୋଲି ଡାକଲା, ଦେଲ ଦୁଃଖ ତା ଫେଡ଼ି ।
କୁରୁ ସଭାଜନ ଗହଳେ ଦ୍ରଉପଦୀ ଅତୁରେ
ଲଜ୍ଜା-ନିବାରଣ ପାଇଁକି ଡାକଦେଲେ ସତ୍ବରେ ॥

ସେ ବିକଳ ଡାକ ଶୁଣିଣ ଟଳିଗଲା ଆସନ
ତକ୍ଷଣେ ଫେଡ଼ିଲ ଦୁର୍ଦଶା ଦେଲ ତାଙ୍କୁ ବସନ ॥
ତୁମ୍ଭର ଦୟାର ଗାରମା ଅବା ବର୍ଣ୍ଣିବ କେତେ
ଅଭୟ ଚରଣେ ଶରଣ ପଶିଲି ମୁଁ ତୁରିତେ ॥

ଚକିତ ସ୍ତମ୍ଭିତ ହୋଇଣ ଏଣୀ ବୁଜିଲା ଆଖି
ରଖ ରଖ ଦୀନବାନ୍ଧବ ! ମୁହିଁ ହେଲି ନିର୍ମାଖୀ ॥
ବଇକୁଣ୍ଠ ପୁରେ ପଲଙ୍କେ କ୍ଷୀରସିନ୍ଧୁ ମଧ୍ୟରେ
ନିଦ୍ରା ଯାଉଥିଲେ ଶ୍ରୀଧର କମଳାଙ୍କ ପାଶରେ ॥

ମୃଗୁଣୀର ସ୍ତୁତି ପଡ଼ିଲା ଯେବେହେ କର୍ଣ୍ଣରେ ଯାଇ
ନିଦ୍ରା ଭାଙ୍ଗିଗଲା ପ୍ରଭୁଙ୍କ ମନ ଚଞ୍ଚଳ ହୋଇ ॥
ଡାକି ଦେବରାଜ ଇନ୍ଦ୍ରଙ୍କୁ ବରଗିଲେ ତକ୍ଷଣେ
ରକ୍ଷା ତୁମ୍ଭେ ଯାଇ ମୃଗୁଣୀ, ତାର ବାଳକଗଣେ ॥

ଶଚୀପତି ଏବେ ପାଇଣ ପ୍ରଭୁଙ୍କର ଆଦେଶ
ମିଳିଲେ ଗହନ କାନନେ ଯାଇ ହରିଣୀ ପାଶ ॥
ଘଡ଼ଘଡ଼ି ଗ୍ରଧାଚଡ଼କ ଷାନପରେ ପଡ଼ିଲା
ଧନୁ ଖସିପଡ଼ି ହାତରୁ ବ୍ୟାଧ ଜୀବନ ଗଲା ॥

ହେଲାଟି ବରଷା ପବନ, ନଥିଁ ଲଭିଲା ଖରେ
ଛିଣ୍ଡିଗଲା ଜାଲ ତକ୍ଷଣେ ଝଡ଼ କୁଆପଥରେ ॥
ତଉଦଗ ଘୋଟି ଅନ୍ଧାର ହଶୁଥିଲା ଭୁବନ
ନିରମଳ ହେଲା କ୍ଷଣକେ ତହିଁ ଘନ କାନନ ॥

ମୃଗୁଣୀ ଶୁହିଁଲା ସଙ୍କଟ କେଣେ ଗଲା ଉଭାଇଁ
ଧୀରେ ଧୀରେ ଚଳେ ହରିଣୀ, ଧନ୍ୟ ଜଗତସାଇଁ ॥
ଏ ସଂସାରେ ବ୍ୟାଧ, କୁକ୍କୁର, ବହ୍ନି. ଜାଲ ପରିସ୍ଥେ
ଘେରିଅଛି ମତେ ସନ୍ତତ ପାପତାପ ନିତ୍ୟେ ॥

ଅଶରଣଶରଣବାନା ହେ ! ଦୁଃଖୀ ଦୁଃଖହାରଣ !
କର କର ପ୍ରଭୁ ତୁମ୍ଭେ ମୋ ଭବଭୟ ବାରଣ ।
( ଶ୍ରୀମତୀ ସୀତାମଣି ଦେବୀ )

---

## ଭଜନ ।

ପାପନାଶନ ତାପ ବାରଣ
ଜଗତଜୀବନ ହେ
ସହର ମୋର ଦୁଃଖ ସହର
ଦିଅ ସଦଜ୍ଞାନ ହେ ।
ଶାନ୍ତ ମୁକତ ଧର୍ମ ସ୍ୱଗତ
ଦିଅ ନିରନ୍ତର ହେ
ତୁମ୍ଭ ଚରଣେ ମୁହିଁ ଅନୁକ୍ଷଣେ
ଥାଏଁ ପତ୍କର ହେ ।
ଯାହା ମୁଁ କରଇଁ ଯାହା ମୁଁ କହଇଁ
ଯାହା ଶୁଣୁଥାଇଁ ହେ
ଯାହା ମୁଁ ଦେଖଇଁ ଯାହା ମୁଁ ଚିନ୍ତଇଁ
ରହୁ ତୁମ୍ଭଠାଇଁ ହେ ।
ଦୁଃଖ ଜଞ୍ଜାଳ ପାପ ବହୁଳ
ଅସାର ସଂସାର ହେ
ଉଦ୍ଧର ଧର ଜଗତ ମଧର
ମୁଁ ଅଟେ ପାମର ହେ ।
( ଗୋପାଳ ଚନ୍ଦ୍ର ପ୍ରହରାଜ )

---

## ଆଖୁ କିଆରି ।

ଆଖୁ କିଆରିରେ ପୁରାଇଣ ମଣ୍ଡପ
କାହିଁ ସାଧୁଅଛ ଦାଉ

ନେବ କେଉଁ ଅଖି    ସବୁ ଦେଖି ଦେଖି
ଥୟ ପାଉନାହିଁ ଆଉ ॥
ସାଇ ପଡ଼ିଶାଙ୍କ    ଧନ ଦେଖି ରଙ୍କ
ଯେବେ ହେଉଛି ମୁଁ ଦିନେ,
ତହିଁ ଆରଦିନ    ଦେଖି ତାଙ୍କ ଜନ
ଲୋଭ ଉପୁଜଇ ମନେ ।
ପୁଣି ପରଦିନ    କାହାର ଦେଖିଣ
ସଉଭାଗ୍ୟ ବଡ଼ ପଣେ
ଉଠୁଛି ମନରେ    ଆଶା ଥରେ ଥରେ
ହେବ ତାଙ୍କପରି ଜଣେ ॥
କାହାର ଦେଖିଣ    ଅତି ବଙ୍କପଣ
ଦେଖି କାହା ପଉରୁଷ
ମନେ ମନେ ପୁଣି    କରେ ମୁଁ ମାଗୁଣି
ମିଳନ୍ତୁ ସୁନାମ ଯଶ ॥
ଅଜି ମନକଥା    କାଲିକି ଅନ୍ୟଥା
ନିତି ନିତି ବଦଳଇ
କିଛି ଦୃଢ଼କରି    ମାଗି ମୁଁ ନ ପାରି
ବଣା ତ ହେଉ ଅଛଇଁ ॥

ଯେତେ ବଡ଼ପଣ    ଯେତେ ଧନ ଜନ
ଯେତେ ସଉଭାଗ୍ୟ ଯଶ
ମିଳିଲେହିଁ ପ୍ରଭୁ    ନୋହିବଟି କେବେଁ
ଏ ମନରେ ଶାନ୍ତି ଲେଶ ॥
ଦେଖି ଦେଖି ନିତି    ଏ ସଂସାର ଗତି
ନ ବୁଝେ ଅବୁଝା ମନ
ତୁମ୍ଭର ସୁଦୟା    ନ ହେଲେ କେବେହେଁ
ଶାନ୍ତି ନୁହେଁ ଏ ଜୀବନ ॥

ଅଢ଼େଇ ଦିନର — ବଡ଼ପଣ ବଳ
ନ ଦିଅ ହେ ପ୍ରଭୁ ମତେ
ଦିଅ ସେହି ବଳ — ଯେ ବଳେ ଭ୍ରମର
ଲାଖିଥିବ ପାଦ ତଳେ ॥
( ଶ୍ରୀମତୀ ସୀତାମଣି ଦେବୀ )

---

## ଭଜନ ।

ଅନାଥର ବନ୍ଧୁ — ଅହେ କୃପାସିନ୍ଧୁ
ମୋ ଦୁଃଖ ହେଲାଣି ଭାର
ଉଠୁଛି ଲହରୀ — ନାବ ହୁଏ ଘାର
କେମନ୍ତେ ହୋଇବି ପାର । ୧ ।
ପ୍ରଲୋଭନେ ପଡ଼ି — ସତ୍ୟପଥ ଏଡ଼ି
ବିବେକପଥକୁ ଛାଡ଼ି
ରିପୁବଶେ ଗଡ଼ି — ମାୟାମୋହେ ଜଡ଼ି
ପାପେ ଯାଉଅଛି ସଡ଼ି । ୨ ।
ଜାଣୁ ଜାଣୁ ମୁହିଁ — ଅନଳକୁ ଡେଇଁ
ହେଉଛି ପତଙ୍ଗସରି
ପାପ ପୁଣ୍ୟ ଜାଣି — ହୁଏ ମୁଁ ଅଜ୍ଞାନୀ
ହେଉଅଛି ହତଶ୍ରୀ । ୩ ।
ଦେଖି ପରଦୁଃଖ — ନ ହୁଏ ବିମୁଖ
ମନରେ ଗର୍ବ ଅଚରି
ମୁହଁରେ କହଇଁ — ଚିତ୍ତେ ନ ହେଜଇଁ
ବେଳ କାଳ ଗଲା ସରି । ୪ ।
( ଗୋପାଳଚନ୍ଦ୍ର ପ୍ରହରାଜ )

---

## ଅରକ୍ଷଜନ ଭଜନ

ଅରକ୍ଷଜନ ଦୁଃଖେ ହୋଇଣ ଘାରି
ଅଣି ପ୍ରଭୁଙ୍କ ପାଦ କରେ ଗୁହାରି ଯେ । ୧ ।

ଇହ ଲୋକରେ ମୁହିଁ ଅଟଇ ଦୁଃଖୀ
ଈଶର ଦୟା ବିନା ହେଲି ନମୀଖୀ ଯେ । ୨ ।

ଉଚ୍ଛୁଳ ପଡ଼ୁ ଅଛି ମୋ ଦୁଃଖସିନ୍ଧୁ
ଊଣା ହେଲା କରୁଣା ହେ ଦୀନବନ୍ଧୁ ଯେ । ୩ ।

ଋଷି ମୁନି ପଣ୍ଡିତ କେତେ ସୁଜ୍ଞାନୀ
ଋଗ୍ବେଦ ଆଦି ଗଲେ କେତେ ବଖାଣି ଯେ । ୪ ।

ଏକା ତୁମ୍ଭର ଅନ୍ତ ପାଇଲେ ନାହିଁ
ଐକାନ୍ତିକ ଭକ୍ତିରେ ତୁମ୍ଭଙ୍କୁ ଧ୍ୟାୟି ଯେ । ୫ ।

ଓଁକାର ବୋଲି ଯେଉଁ ଏକଅକ୍ଷର
ଔଷଧ ଅଟଇ ସେ ଭବବିଷର ଯେ । ୬ ।

କଳନା କେହି ତାର କରି ନାହାନ୍ତି
ଖଳ ବନ୍ଧନେ ପଡ଼ି ଜଞ୍ଜାଳେ ମାତି ଯେ । ୭ ।

ଗଣନା ନୁହେଁ କେବେଁ ତୁମ୍ଭ ଗାରିମା
ଘୋଟି ଅଛଇ ବିଶ୍ୱ ନାହିଁ ତା ସୀମା ଯେ । ୮ ।

ନଟକୂଟରେ ପୂର୍ଣ୍ଣ ମାୟା ସଂସାର
ଚଉଦଶେ ବେଢ଼ିଛି କ ଅନ୍ଧକାର ଯେ । ୯ ।

ଛନ୍ଦ କପଟ ମତେ ଅଛନ୍ତି ଛନ୍ଦି
ଜଞ୍ଜାଳ ମାୟାଫାନ୍ଦେ ହୋଇଛି ବନ୍ଦୀ ଯେ । ୧୦ ।

ଝଡ଼ପଡ଼ୁଛି ଦେହ, ଚେତନା ହତ
ନ ଥାଇ ଜ୍ଞାନଚକ୍ଷୁ ନଦଶେ ପଥ ଯେ । ୧୧ ।

ଟାଣି ଧରିଛି ମତେ ଭବ ଶାଙ୍କୋଳ
ଠାଏ ଠାଏ ତା ଦନେ ଯିବନ୍ତି ଛୁଡ଼ି ଯେ । ୧୨ ।

ଡହଳ ବକଳରେ ପଡ଼ିବ ଯାହିଁ
ଭସ ମୋହର କିଛି ରହିବ ନାହିଁ ଯେ । ୧୩ ।
ଅଣଅସ୍ତ୍ରେ ପଡ଼ି ରସାତଳରେ
ତରକ ନ ପାରୁଛି ନଶାଭୋଳତେର ଯେ । ୧୪ ।
ଥୟ ନାହିଁଟି ମୋର ଥରେ ହୃଦୟ
ଦମ୍ଭ କାହୁଁ ହୋଇବ ନବଳ ଦେହ ଯେ । ୧୫ ।
ଧର୍ମ ବନ୍ଧନେ ତଣ୍ଟା ବଡ଼େ ନଷ୍ଟସ୍ତ୍ର
ନାବ ସିନ୍ଧୁ ମଧରେ, ନାହିଁ ସହାୟ ଯେ । ୧୬ ।
ପାର ହେବା ପାଇଁକ ବଳୁଛି ମନ
ଫୁକାରିଲେ ମୁଁ ଯେତେ ନ ଶୁଣେ ଆନ ଯେ । ୧୭ ।
ବଳ ବୟସ ବନେ ଯିବନ୍ତି ସରି
ଭାଳେଣି ପଡ଼ିଯିବ ହୋଇବ ପାରି ଯେ । ୧୮ ।
ମନେ ମନେ ମୁଁ ଦମ୍ଭ ବାନ୍ଧୁଛି ଭାର
ଯମ ଦଣ୍ଡକୁ ପସ ଯିବନ୍ତ ଏଡ଼ ଯେ । ୧୯ ।
ରହିବ ନାହିଁ ଶେଷେ ଏ ବଡ଼ପଣ
ଲକ୍ଷ ଲକ୍ଷ ମୋ ପର ଗଲେଣି ଜାଣ ଯେ । ୨୦ ।
ବଶ ନୋହୁଛି କେବେ ଅବୁଝା ମନ
ଟେକା ଉପୁଜୁ ନାହିଁ ଗୋଟି ଅଜ୍ଞାନ ଯେ । ୨୧ ।
ଷଡ଼ଯନ୍ତ୍ର ମୋହର ରହିବ ନାହିଁ
ସବୁ ଉଜୁଡ଼ିଯିବ, ଯିବ ମୁଁ କାହିଁ ଯେ । ୨୨ ।
ହରି ନାମଟି ଏକା ଅଟଇ ସାର
କ୍ଷମା କର ହେ ପ୍ରଭୁ ଦୁର୍ଗତି ମୋର । ୨୩ ।

( ଶ୍ରୀମତୀ ପୀତାମୃତ ଦେବୀ )

ସମାପ୍ତ ।

---

କଟକ ଦେଓଡ଼େଦଡେ ଶ୍ରୀ ହରମୋହନ ଦତ୍ତଙ୍କ ଦ୍ୱାରା ମୁଦ୍ରିତ ।

# ବିଜ୍ଞାପନ ।



ନିମ୍ନଲିଖିତ ପୁସ୍ତକମାନ ୩ୟ ଶ୍ରେଣୀଠାରୁ ୭ମ ଶ୍ରେଣୀ
ପର୍ଯ୍ୟନ୍ତ ଛାତ୍ରମାନଙ୍କର ବିଶେଷ ଉପଯୋଗୀ ଅଟେ ।

| | |
|---|---|
| ୪ର୍ଥ ଶ୍ରେଣୀ ଭୂଗୋଳ ନୋଟର ଟୀକା | ଟ ୦ ।/ |
| ୫ମ ଶ୍ରେଣୀ ଭୂଗୋଳ ନୋଟର ଟୀକା | ଟ ୦ ।୵ |
| ୬ଷ୍ଠ ଶ୍ରେଣୀ ଭୂଗୋଳ ପ୍ରଶ୍ନୋତ୍ତର | ଟ ୦ ।/ |
| ୭ମ ଶ୍ରେଣୀ ଭୂଗୋଳ ପ୍ରଶ୍ନୋତ୍ତର | ଟ ୦ ।/ |
| ୪ର୍ଥ ଓ ୫ମ ଶ୍ରେଣୀ ପ୍ରକୃତିପାଠ ଶିକ୍ଷା | ଟ ୦ ୷ |
| ନିମ୍ନ ପ୍ରାଥମିକ ଇତିହାସ ( ଗୋବିନ୍ଦ ମିଶ୍ର ) | ଟ ୦ ୵୬ |
| ବ୍ୟବହାରିକ ଲେଖନପାଠ ୧ମ | ଟ ୦ ।୶ |
| ଲେଖନ ପଠନ ପଦ୍ଧତି ୧ମ ଭାଗ ( ଗୋବିନ୍ଦ ମିଶ୍ର ) | ଟ ୦ ୵୩ |
| ଲେଖନ ପଠନ ପଦ୍ଧତି ୨ୟ ଭାଗ ,, | ଟ ୦ ୷ |
| ଉଚ୍ଚ ପ୍ରାଥମିକ ନବବିଧାନ ଗଣିତ | ଟ ୦ ୳୵ |
| ନିମ୍ନ ପ୍ରାଥମିକ ନବବିଧାନ ଗଣିତ | ଟ ୦ ।୵ |
| ଉଚ୍ଚ ନବବିଧାନ ଗଣିତ ଉତ୍ତର | ଟ ୦ /୬ |
| ନିମ୍ନ ପ୍ରାଥମିକ ନବବିଧାନ ଗଣିତ ଉତ୍ତର | ଟ ୦ ।୵ |
| ପିଲଙ୍କ ରାମାୟଣ ଗଦ୍ୟ ( ନୀଳକଣ୍ଠ ଦାଶ ଏମ୍, ଏ ) | ଟ ୦ ୳୵ |
| ଶିଶୁ ରାମାୟଣ ଗଦ୍ୟ ( ବାଳକୃଷ୍ଣ କର ବି, ଏ, ) | ଟ ୦ ।୵ |

ପ୍ରାପ୍ତିସ୍ଥାନ ।

ଶ୍ରୀ ଅକୁଳ ମିଶ୍ର କାର୍ଯ୍ୟକର୍ତ୍ତା
ମେନେଜର, କଟକ ଟ୍ରେଡିଂ କୋଃ

ପୋଃ ଅଃ ଗୃନ୍ଧଗାଟୀକ,
ବାଲୁବଜାର, କଟକ ।

Printed by H. M. Dutta. Dutta Press, Cuttack